# ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ

## ରାଜା ବ୍ରଜରାଜ ସିଂହ ଦେଓ,

କୈସର-ଇ-ହୀନ୍ଦ (ସ୍ୱର୍ଣ୍ଣପଦକ)



୧୯୯୩

ଖଡ଼ିଆଲ ସାହିତ୍ୟ ସମିତି

ଖଡ଼ିଆଲ

# ଉପକ୍ରମ

ସୃଜନକ୍ଷମ ବ୍ୟକ୍ତିମାନେ ନିଜର ଜୀବନ କାଳରେ ସମାଜକୁ ବିଶେଷ ପ୍ରଭାବିତ କରିଥାନ୍ତି । ଏହିହେତୁ ସେମାନଙ୍କର ଅନ୍ତର୍ଦୃଷ୍ଟିକୁ ଦୀର୍ଘକାଳ ଜୀବନ୍ତ କରି ରଖିବାକୁ ହେଲେ ସେମାନଙ୍କର ଜୀବନଚରିତର ପ୍ରସାର ନିତାନ୍ତ ଆବଶ୍ୟକ । ଏପରି ଏକ ମହାନୁଭବ ମାନବ ଥିଲେ ଖଡ଼ିଆଳ ଅଧିପତି ରାଜା ବ୍ରଜରାଜ ସିଂହ ଦେଓ । ସେ ବିବିଧ ଗୁଣରେ ଶ୍ରେଷ୍ଠତା ଲାଭ କରିଥିଲେ । ତାଙ୍କର କାର୍ଯ୍ୟାବଳୀ ଓ ଓଡ଼ିଆ ସାହିତ୍ୟର ଉନ୍ନତି କଲ୍ପେ ତାଙ୍କର ଅବଦାନକୁ ସ୍ମରଣ କରିବା ନିମନ୍ତେ ଏହି ଜୀବନ ଚରିତ ପ୍ରକାଶ କରାଯାଇଅଛି ।

ଆଶା ଏହା ଅନୁସନ୍ଧାନକାରୀଙ୍କର ଆବଶ୍ୟକ ହୋଇପାରିବ ।

ଇତି

ଜିତାମିତ୍ର ପ୍ରସାଦ ସିଂହଦେଓ

୧୯୯୩ ସଭାପତି

ଖଡ଼ିଆଳ ସାହିତ୍ୟ ସମିତି

# ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ ରାଜା ବ୍ରଜରାଜ ସିଂହ ଦେଓ,

**କୈସର-ଇ-ହିନ୍ଦ ( ସ୍ୱର୍ଣ୍ଣପଦକ )**

ବ୍ରଜରାଜ ସିଂହ ଦେଓ ୧୮୫୧ ମସିହା ମାଘ ଶୁକ୍ଳ ପଞ୍ଚମୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ରାଜା ପଦ୍ମନ ସିଂହ ଦେଓ ଏବଂ ମାତା ଶ୍ରୀମତୀ ରମ୍ଭାବତୀ ଦେବୀ । ତାଙ୍କ ଦୁଇ ବଡ ଭଉଣୀ ଥିଲେ । ବଡ ଭଉଣୀ ମାଣ୍ଡବିସି ( କଳାହାଣ୍ଡି କାଶୀପୁର ଏବଂ ସାନ ଭଉଣୀ ବଡ ଖେମଣ୍ଡିରେ ବିବାହ କରିଥିଲେ । ପାରିବାରିକ କାରଣ ବଶତଃ, ପଦ୍ମନ ସିଂହ କଳାହାଣ୍ଡିର ତତ୍‌କାଳୀନ ରାଜଧାନୀ ଜୁନାଗଡରେ ରାଜପରିବାରର ଆଶ୍ରୟ ନେଇଥିବା କାଳରେ ବ୍ରଜରାଜଙ୍କ ବାଲ୍ୟଶିକ୍ଷା ସେଠାକାର ସଂସ୍କୃତ ଟୋଲରେ ଆରମ୍ଭ ହୋଇଥିଲା । ଅନୁକୂଳ ପରିବେଶ ପାଇ ବ୍ରଜରାଜଙ୍କ ପ୍ରତିଭା ବିକଶିତ ହେଲା । ରାଜା କୃଷ୍ଣଚନ୍ଦ୍ର ସିଂହ ଦେଓଙ୍କ ମୃତ୍ୟୁ ପରେ ୧୮୬୭ ମସିହାରେ ପଦ୍ମନ ସିଂହ ଦେଓ ଖଡ଼ିଆଳର ରାଜା ହେଲେ ଏବଂ ୧୮୭୬ ମସିହାରେ ଯୁବରାଜ ବ୍ରଜରାଜ ପିତାଙ୍କ ଠାରୁ ଶାସନ ଭାର ପ୍ରାପ୍ତ ହୋଇଥିଲେ ।

ବ୍ରଜରାଜଙ୍କ ଶାସନ ଦକ୍ଷତା, 'ମଧ୍ୟ ପ୍ରଦେଶ ଶାସନ ରିପୋର୍ଟ ୧୮୮୨-୮୩, ଦ୍ୱିତୀୟ ଭାଗ, ପୃ. ୬୨ ରେ ଉଲ୍ଲିଖିତ ହୋଇଛି :— "ଖଡ଼ିଆଳ : ଖଡ଼ିଆଳ ଜମିଦାର ବରଂ ତାଙ୍କ ପୁତ୍ର ଯୁବରାଜ ପଦ୍ମନ ସିଂହ, ପିତାଙ୍କ ଠାରୁ ରାଜ୍ୟ ପରିଚାଳନା ଦାୟିତ୍ୱ ଲାଭକରି ପ୍ରକୃତରେ ଶାସନ କରୁଛନ୍ତି ଏବଂ କଳାହାଣ୍ଡିର କନ୍ଧମେଳି ଦମନ କରିବାକୁ ଯିବା ମାନ୍ଦ୍ରାଜର ଷୋଡଶ ଏବଂ ତ୍ରୟୋବିଂଶ ପଦାତିକ ବାହିନୀ, ଖଡ଼ିଆଳ ରାଜ୍ୟ ମଧ୍ୟରେ ଯାତ୍ରା ପଥରେ ସେମାନଙ୍କୁ ଆବଶ୍ୟକ ସାମଗ୍ରୀ ଯୋଗାଇ ଥିବାରୁ ଯୁବରାଜ ବ୍ରଜରାଜ ସେନାଧ୍ୟକ୍ଷଙ୍କ ଧନ୍ୟବାଦର ପାତ୍ର ହୋଇ ପାରିଥିଲେ । ନିଜ ରାଜ୍ୟର କନ୍ଧମାନେ ମେଳିରେ ଯୋଗ ନ ଦେବାକୁ ସତର୍କ ଦୃଷ୍ଟି ରଖିବା, ଅନୁସରଣକାରୀ କନ୍ଧମାନଙ୍କ ଠାରୁ ଶରଣାର୍ଥୀ କୁଳଥାମାନଙ୍କୁ ରକ୍ଷା କରିବା ନିମନ୍ତେ ଛତିଶଗଡ ବିଭାଗର କମିଶନର ମଧ୍ୟ ତାଙ୍କୁ ପ୍ରଶଂସା କରିଥିଲେ ।'

ବାଲ୍ୟକାଳରୁ ବ୍ରଜରାଜ ବିଳାସପ୍ରିୟ ନ ଥିଲେ । ସେ ପିତାଙ୍କ ସହ ସାଗ

ରାଜ୍ୟରେ ଗସ୍ତ କରି ପ୍ରଜାବର୍ଗଙ୍କ ସଂପର୍କରେ ଆସିଥିଲେ । ଶାସନ କ୍ଷେତ୍ରରେ ସରକାରୀ ଉଚ୍ଚ ପଦସ୍ଥ କର୍ମଚାରୀଙ୍କ ସହ ସୁସମ୍ପର୍କ ସ୍ଥାପନ କରୁଥିଲେ । ତାଙ୍କ ପ୍ରଚେଷ୍ଟାରେ ରାଜ୍ୟର ସାଂସ୍କୃତିକ ଅର୍ଥନୈତିକ ଉନ୍ନତି ଘଟିଥିଲା । ବ୍ରିଟିଶ ସର-କାର ତାଙ୍କୁ ପ୍ରଶଂସା କରୁଥିଲେ ।

ବିବାହ ବୟସ ହେବାରୁ ବ୍ରଜରାଜ ଚଣେଇ କଦମ୍ବ ରାଜ ପରିବାରର ଧନେଶ୍ୱରୀ ପ୍ରିୟା ଦେବୀଙ୍କ ପାଣିଗ୍ରହଣ କରିଥିଲେ । ଧନେଶ୍ୱରୀ ପ୍ରିୟା ଦେବୀ ବୀରବିକ୍ରମ ଦେଓ ଓ ଶିବ ନାରାୟଣ ଦେଓଙ୍କ ଜନନୀ । ଶିବ ନାରାୟଣ ଦେଓଙ୍କ ଜନ୍ମର କେତେଦିନ ପରେ ଧନେଶ୍ୱରୀ ପ୍ରିୟା ଦେବୀ ଇହଲୀଳା ସାଙ୍ଗ କରିବାରୁ ରାଜା ପଦ୍ମନ ସିଂହ ଆଗଲପୁର ସାହିଣୀ ଜାଲ ପରିବାରର ଶ୍ରୀମତୀ ମୁକ୍ତା କୁମାରୀ ଦେବୀଙ୍କ ସହ ବ୍ରଜରାଜଙ୍କ ବିବାହ କରାଇଥିଲେ । ବ୍ରଜରାଜ ସିଂହାସନାରୂଢ଼ ହେବା ପରେ ମୁକ୍ତା କୁମାରୀ ଦେବୀ ନିଃସନ୍ତାନ ହୋଇ କାଳକବଳିତ ହେବାରୁ ବ୍ରଜରାଜ ପ୍ରଥମ ପତ୍ନୀଙ୍କ ସାନ ଭଉଣୀ କ୍ଷୀରୋଦ୍ରୀ ପ୍ରିୟା ଦେବୀଙ୍କୁ ବିବାହ ହେଲେ । କ୍ଷୀରୋଦ୍ରୀ ପ୍ରିୟା ରତ୍ନପ୍ରଭା ଦେବୀ ଓ ଚନ୍ଦ୍ରପ୍ରଭା ଦେବୀ ନାମକ ଦୁଇଟି କନ୍ୟା ଏବଂ ୧୮୯୯ ମସିହାରେ ଜାତ ଚନ୍ଦ୍ରଧ୍ୱଜ ଦେବଙ୍କ ମାତା ।

ପଣ୍ଡିତ, ଜ୍ୟୋତିଷ, ଚିକିତ୍ସକ ତଥା କବି ଖଡ଼ିଆଳ ରାଜ ଦରବାରକୁ ମଣ୍ଡିତ କରିଥିଲେ । ସେମାନେ ବ୍ରଜରାଜଙ୍କ କବିତ୍ୱର ଭୂୟସୀ ପ୍ରଶଂସା କରୁ-ଥିଲେ । ଏହି ଦରବାରରୁହିଁ ଯୁବକବିଗଣ ପ୍ରେରଣା ପାଉଥିଲେ । ସଂସ୍କୃତି ସାହିତ୍ୟ ସମ୍ପନ୍ନ ପରିବେଶରୁ ବ୍ରଜରାଜଙ୍କ ଆବିର୍ଭାବ । ସେ ଶାରୀରିକ ଶିକ୍ଷାର ପୃଷ୍ଠ ପୋଷକ ଥିଲେ । ତାଙ୍କ ବକ୍ଷ ବିସ୍ତୃତ ଏବଂ ବାହୁ ଯୁଗଳ ବଳିଷ୍ଠ ଥିଲା । ଲୌହ ଦଣ୍ଡକୁ ବକ୍ଷର ଉପରେ ବକ୍ର କରି ଦେଉଥିଲେ । ତାଙ୍କର ଦୁଇଟି ଗଦା— ପ୍ରତ୍ୟେକଟି ୧୧ କେ: ଜି: ବିଶିଷ୍ଟ ଏବଂ ଶାୟିତ ବ୍ୟାୟାମ କରିବା କାଷ୍ଠଧାରଣା ଦୁଇଟି ଖଡ଼ିଆଳ ଯାଦୁଘରରେ ସଂରକ୍ଷିତ ହୋଇଅଛି । ଏଥିରୁ ତାଙ୍କ ଅସାଧାରଣ ଶକ୍ତିର ସ୍ପଷ୍ଟ ପରିଚୟ ମିଳେ । ସେ ଏକ ମଲ୍ଲଯୋଦ୍ଧା ଦଳ ରଖିଥିଲେ ।

ରାଜ୍ୟ ଅଶ୍ୱଶାଳାରେ ଅନେକ ଅଶ୍ୱ ଥିଲେ । ସେ ସୁଦକ୍ଷ ଅଶ୍ୱାରୋହୀ ଥିଲେ ତାଙ୍କ ତାଲିମ ପ୍ରାପ୍ତ ପ୍ରିୟ ଅଶ୍ୱ ପୃଷ୍ଠରେ ଚଢ଼ି ଆଶ୍ଚର୍ଯ୍ୟ ଜନକ ଘୋଡ଼ା ଦୌଡ଼ ଏବଂ ସମାନ୍ତରାଳ ଭାବରେ ଧାବମାନ ଅଶ୍ୱଦ୍ୱୟ ପୃଷ୍ଠରେ ଦଣ୍ଡାୟମାନ ହୋଇ ଅଦ୍ଭୁତ କ୍ରୀଡ଼ା ପ୍ରଦର୍ଶନ କରୁଥିଲେ ।

ସେ ଯୁବରାଜ ଥିବା ସମୟରେ ବହୁଶାସ୍ତ୍ର ଅଧ୍ୟୟନ କରିଥିଲେ । ଧର୍ମଶାସ୍ତ୍ର ଜ୍ଞାନ, ଭଗବତ୍ ପ୍ରେମ ତଥା ପ୍ରତିଭା ବଳରେ କାବ୍ୟ କବିତାମାନ ରଚନା କରି ଉତ୍କଳ ଭାରତୀଙ୍କୁ ଶ୍ରୀମଣ୍ଡିତ କରିଅଛନ୍ତି । କବି ବ୍ରଜରାଜଙ୍କ ରୀତି କାବ୍ୟ ରଚନା କ୍ଷେତ୍ରରେ କବିତ୍ୱ ଶକ୍ତିର ଅସାଧାରଣ ପରିଚୟ ମିଳେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରୀତିରେ ତାଙ୍କ ସାହିତ୍ୟ ସୃଷ୍ଟି । କବିବର ରାଧାନାଥ ରାୟ ବ୍ରଜରାଜଙ୍କୁ "ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ" ଆଖ୍ୟା ଦେଇଛନ୍ତି । ୧୮୯୩ ମସିହା ସେପ୍ଟେମ୍ବର, ୧୬ ତାରିଖରୁ ପ୍ରକାଶିତ 'ବିଜୁଳୀ' ରେ ଏହା ଉଲ୍ଲିଖିତ । ୧୮୯୩ ମସିହା ୧୬, ଅଗଷ୍ଟରୁ ପ୍ରକାଶିତ 'ଇନ୍ଦ୍ରଧନୁ' ରେ ସାର୍ ବାସୁଦେବ ସୁଦଳ ଦେବ ମଧ୍ୟ 'ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ' ବୋଲି ସ୍ୱୀକୃତି ଜ୍ଞାପନ କରିଅଛନ୍ତି । କବି ଗଙ୍ଗାଧର ମେହେର ମଧ୍ୟ ବ୍ରଜରାଜଙ୍କୁ 'ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ' ବୋଲି ବର୍ଣ୍ଣନା କରି-ଅଛନ୍ତି । ପ୍ରକୃତରେ କବି, ଦାର୍ଶନିକ, ଆଧ୍ୟାତ୍ମିକ ଜ୍ଞାନ ସମ୍ପନ୍ନ ବ୍ୟକ୍ତି ସୃଷ୍ଟିର ମଙ୍ଗଳ ସାଧନ କରନ୍ତି । ବ୍ରଜରାଜ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ ଆଦର୍ଶ ପୁରୁଷ ଥିଲେ । ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ, ଓଡ଼ିଶା ଶାସନ ସଚିବ ଏବଂ ନିର୍ଦ୍ଦେଶକ ଶ୍ରୀ ଅଓ୍ୱଧ ନାରାୟଣ ତିଓ୍ୱାରୀ, ଆଇ ଏ. ଏସ. ମହୋଦୟଙ୍କ ଯୌଜନ୍ୟରେ "ବ୍ରଜରାଜ ଗ୍ରନ୍ଥାବଳୀ" ୧୯୭୪ ମସିହାରେ ପ୍ରକାଶିତ ହୋଇ ବ୍ରଜରାଜଙ୍କ ସାହିତ୍ୟ ସାଧନାର ବୈଶିଷ୍ଟ୍ୟ ପ୍ରତିପାଦିତ ହେଲା ।

ଖ୍ରୀ: ୧୮୮୩—୧୮୮୭ ମଧ୍ୟରୁ ବ୍ରଜରାଜଙ୍କ କାବ୍ୟ-କବିତା ପ୍ରକାଶିତ । ତାଙ୍କ ରଚନାବଳୀ :—

'ବ୍ରଜବଧୂ ବିଳାସ, ଶୋଭାବଲ୍ଲରୀ, ରତ୍ନପ୍ରଭା, ରୂପମଞ୍ଜରୀ, ଚଉତିଶାହ୍ରୟ, ସଙ୍ଗୀତଗୁଚ୍ଛ, ପ୍ରବନ୍ଧ ଚିତ୍ରକାବ୍ୟ ପ୍ରଭୃତି ସାରସ୍ୱତ ସୃଷ୍ଟି ତଥା ସଂସ୍କୃତ ସ୍କନ୍ଦ ପୁରାଣରୁ ନବାକ୍ଷରୀ 'ସତ୍ୟନାରାୟଣ ବ୍ରତ କଥା' ଅନୁବାଦ । ସେ ବଉଳ ଚଉ-ତିଶା ଏବଂ ଅଳଙ୍କାର ଶାସ୍ତ୍ର (ଅପ୍ରାପ୍ୟ) ରଚନା କରିଥିବା ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷ ଏବଂ କବି ଶେଖର ଚିନ୍ତାମଣି ମହାନ୍ତିଙ୍କ ଜୀବନ ପଞ୍ଜିକାରୁ ବିଦିତ ହୁଏ ।

୧୮୮୯ ମସିହା ଜୁନ, ୧୦ ତାରିଖରେ ରାଜା ପଦ୍ମନ ସିଂହ ପରଲୋକ ଗମନ କଲେ ଏବଂ ଯୁବରାଜ ବ୍ରଜରାଜ ସିଂହ ଦେଓ ଖଡ଼ିଆଳ ରାଜ ସିଂହାସନ ଆରୋହଣ କଲେ । କୌଣସି ରାଜ୍ୟର ଉନ୍ନତି କୃଷି ଉପରେ ନିର୍ଭର କରେ । ତେଣୁ ରାଜା ବ୍ରଜରାଜ ରାଜ୍ୟ କୃଷି କ୍ଷେତ୍ରମାନ ପରିଷ୍କାର କରି ଭଣ୍ଡାର ଘରମାନ ନିର୍ମାଣ କରାଇଲେ ଏବଂ ବ୍ୟକ୍ତିଗତ ଭାବରେ ପର୍ଯ୍ୟବେକ୍ଷଣ କରୁଥିଲେ । ତଦ-

ବୋଡରେ ଏକ ପଶୁପାଳନ କେନ୍ଦ୍ର ସ୍ଥାପନ କରି ଉନ୍ନତ ଜାତିର ଷଣ୍ଢ ରଖାଗଲା । ଖଡିଆଳର ପ୍ରସିଦ୍ଧ "ଅନ୍ନପୂର୍ଣ୍ଣା ଭୁବା" (ଭଣ୍ଡାର) ସମ୍ବତ୍ ୧୯୪୭, ଖ୍ରୀ: ୧୮୯୦ ରେ ପ୍ରତିଷ୍ଠିତ ହୋଇଥିଲା ।

୧୮୮୯-୯୦ ମସିହାରେ ଖଡିଆଳରୁ ରାୟପୁର ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ଯୋଜନା ହେଲା ଏବଂ ଏଥିପାଇଁ ବ୍ରଜରାଜ ନିଜ ରାଜ୍ୟ ମଧ୍ୟରେ ଦଖଲ କରାଯାଇଥିବା ଜମିର କ୍ଷତି ପୂରଣ ନ ନେଇ ଜମିଦାନ କରିଥିଲେ । କର୍ଣ୍ଣଲ ଜେ ଏ. ଟେମ୍ପଲ, ଡେପୁଟି କମିଶନର ରାୟପୁର, ପତ୍ର ନ: ୪୫୦୨ ତା: ୩୦-୬-୧୮୯୦ ରେ ବ୍ରଜରାଜଙ୍କ ବଦାନ୍ୟତା ଏବଂ ଜନପ୍ରୀତି ଲିପିବଦ୍ଧ ହୋଇଛି । କଳାହାଣ୍ଡିରୁ ରାୟପୁରକୁ ସଂଯୋଗ କରୁଥିବା ରାସ୍ତାର କ୍ଷତିପୂରଣ ନ ନେବା ହେତୁ ନାଗପୁରର ମୁଖ୍ୟ କମିଶନର ଏ. ମେକେଞ୍ଜିଙ୍କ ଠାରୁ ତା: ୩୦-୮-୧୮୯୦ ଚିଠିରେ ବ୍ରଜରାଜ ପ୍ରଶଂସା ପତ୍ର ଏବଂ ସନନ୍ଦ ଲାଭ କରିଥିଲେ । ସେ ନିଜ ରାଜ୍ୟର ଆରଙ୍ଗ-ଖଡିଆଳ ଏବଂ ନୂଆପଡା ବିନ୍ଦ୍ରନୂଆଗଡ ପଥ ପାର୍ଶ୍ୱରେ ପ୍ରତି ତିନି ମାଇଲେ ଗୋଟିଏ କୂପ ଖନନ ଓ ବୃକ୍ଷ ରୋପଣ କରାଇଥିଲେ । ଆଜି ବି ସେହି ସମୟର କେତେକ କୂପ ଅଛି ।

ରାଜା ବ୍ରଜରାଜ ବହୁ କାର୍ଯ୍ୟଦକ୍ଷ ଥିଲେ । ସେ ଶିକ୍ଷା ସଂସ୍କୃତି ପ୍ରତି ଗୁରୁତ୍ୱ ଆରୋପ କରିଥିଲେ । ନୂତନ ଆରମ୍ଭ ହୋଇଥିବା "ରାଜକୁମାର କଲେଜ", ରାୟପୁର, ନିୟନ୍ତ୍ରକ ସମିତିର ସେକ୍ରେଟରୀ ଜି ଭି ଓସଲୋଙ୍କ ପତ୍ର ନ: ୭୯/ ତା: ୧୨-୧୧-୧୮୯୪ ବ୍ରଜରାଜ ସିଂହ ଦେଓଙ୍କୁ 'ରାଜକୁମାର କଲେଜ, ନିୟନ୍ତ୍ରକ ସମିତିର ସଭ୍ୟ' ମନୋନୀତ କରିଥିବା ପରିଚୟ ଦିଏ । ବ୍ରଜରାଜ ଶିକ୍ଷାର ପ୍ରସାର ନିମନ୍ତେ ଦଶଗୋଟି ପକ୍କା ସ୍କୁଲଗୃହ ନିର୍ମାଣ କରାଇ ଜିଲ୍ଲା ପରିଷଦକୁ ଅର୍ପଣ କରିଥିଲେ ଏବଂ ଖଡିଆଳରେ ଦୁଇମହଲା ବିଶିଷ୍ଟ 'ଓଡିଆ ମଧ୍ୟ ଇଂରାଜୀ ବିଦ୍ୟାଳୟ' "ଏଙ୍ଗଲୋ ଭର୍ଣ୍ଣାକୁଲର ମିଡଲ ସ୍କୁଲ" ପ୍ରତିଷ୍ଠା କଲେ । ଏତଦ୍ଦ୍ୱାରା ଇଂରାଜୀ ଶିକ୍ଷାର ପ୍ରସାର ହେଲା । ସଂପ୍ରତି ଏହି ବିଦ୍ୟାଳୟ 'ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ' ହୋଇଛି ।

ତତ୍କାଳୀନ ସରକାର ବ୍ରଜରାଜଙ୍କୁ ଡେପୁଟି କମିଶନର କ୍ଷମତା ପ୍ରଦାନ କରିଥିଲେ । ଏହି କ୍ଷମତାରେ ସେ ମୁକଦ୍ଦମା ନିଯୁକ୍ତି, ବରଖାସ୍ତ ତଥା ଦଣ୍ଡାଦେଶ ଦେଉଥିଲେ; ଅବୈତନିକ ସହକାରୀ କମିଶନର ହୋଇ ଫୌଜଦାରୀ ଏବଂ ଦେବାନୀ ମକଦ୍ଦମା ବିଚାର କରୁଥିଲେ । ନ୍ୟାୟପରାୟଣ, ପ୍ରଜାପରାୟଣ ତଥା ସତ୍କାର୍ଯ୍ୟାବଳୀ ଯୋଗୁଁ ସରକାରୀ ସମ୍ମାନ ଲାଭ କରିଥିଲେ ।

ବ୍ରଜରାଜଙ୍କ ଜ୍ୟୋତିଷ ଶାସ୍ତ୍ର, ଆୟୁର୍ବେଦ ଶାସ୍ତ୍ର ଜ୍ଞାନ ଥିଲା ଓ ଉତ୍ତମ ଚିକିତ୍ସକ ଥିଲେ । ତାଙ୍କ ରଚନାବଳୀରୁ ଏହାର ପରିଚୟ ମିଳେ । ପିତାଙ୍କ ସ୍ମୃତି-ରକ୍ଷା ପାଇଁ 'ପଦ୍ମନ ସିଂହ ଡାକ୍ତରଖାନା', ଖଡ଼ିଆଳ ୧୮୯୪ ମସିହାରେ ସ୍ଥାପନ କରିଥିଲେ । ଏହା ବର୍ତ୍ତମାନ 'ଉଚ୍ଚ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର'ରେ ପରିଣତ ହୋଇଛି । "ପଦ୍ମନ ସିଂହ ଡାକ୍ତରଖାନା- ୧୮୯୪" ନାମ ଫଳକ ଲେଖକ ପ୍ରଦାନ କରିବାରୁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଯାଦୁଘରରେ ସଂରକ୍ଷିତ ହୋଇଛି ।

୧୮୯୨ ମସିହା ସେପ୍ଟେମ୍ବର ୧ ତାରିଖରେ ପୋଲିସ ପରିଚାଳନା ଅଧି-କାର ସରକାର ତାଙ୍କଠାରୁ ପ୍ରତ୍ୟାହାର କରିନେଲେ । ଫଳତଃ, ବ୍ରଜରାଜଙ୍କୁ ପୋଲିସ ଶାସନ ପାଇଁ ଟ. ୧,୬୫୬ ବାର୍ଷିକ ଦେୟ ଦେବାକୁ ପଡ଼ିଥିଲା । ଏପ୍ରିଲ ପହିଲା, ୧୮୯୪ ରେ ଅବକାରୀ ଶାସନ କ୍ଷମତା ମଧ୍ୟ ପ୍ରତ୍ୟାହାର କରିନେଇ ସରକାର କ୍ଷତିପୂରଣ ସ୍ୱରୂପ ଟ. ୩୧,୦୪୮ ଦେଉଥିଲେ ମାତ୍ର ବ୍ରଜରାଜ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ବ୍ରଜରାଜଙ୍କ ଜୀବନୀ ନାନା ଘଟଣା ପରିପୂର୍ଣ୍ଣ । ହରିସିଂହ ଗଉଡ଼ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇ ଗୁଣଗ୍ରାହୀ ବ୍ରଜରାଜଙ୍କ ଉଚ୍ଚ ଶିକ୍ଷା ପାଇଁ ନିବେଦନ କଲେ । ବ୍ରଜରାଜ ତାଙ୍କୁ ଲଣ୍ଡନରେ ପଢ଼ିବାକୁ ପଠାଇଲେ । ଡକ୍ଟର ହରିସିଂହ ଫିସ୍ ନ ନେଇ ଖଡ଼ିଆଳ ଦରବାରର ମକଦ୍ଦମା ଲଢ଼ୁଥିଲେ । ତତକାଳୀନ ମଧ୍ୟପ୍ରଦେଶର ଜମିଦାରମାନଙ୍କ ମଧ୍ୟରେ ବ୍ରଜରାଜ ସହଜାତ ଔଦାର୍ଯ୍ୟ ଗୁଣରେ ଅଦ୍ୱିତୀୟ ଥିଲେ । ସେ ସ୍ପଷ୍ଟବାଦୀ, ସତ୍ୟନିଷ୍ଠ ଓ ସଚ୍ଚରିତ୍ରବାନ ଥିଲେ । ସେ ଖଡ଼ିଆଳର ଦୈନିକ ବଜାର, ଅନ୍ୟାନ୍ୟ ସ୍ଥାନରେ ବିଭିନ୍ନ ଦିବସରେ ସାପ୍ତାହିକ ବଜାର ବସାଇ ଥିଲେ ଏବଂ 'ଖଡ଼ିଆଳର ଚନ୍ଦନଯାତ୍ରା' ଆରମ୍ଭ କରିଥିଲେ । ତାଙ୍କ ଗାଦିର କାଳରେ ପ୍ରତ୍ୟେକ ପର୍ବପର୍ବାଣି ଆନନ୍ଦ ଉତ୍ସାହ ସହ ପ୍ରତିପାଳିତ ହେଉ-ଥିଲା । ୧୮୯୫ ମସିହାରେ 'ପ୍ରଥମ ସ୍ଥାୟୀ ଓଡ଼ିଆ ରଙ୍ଗମଞ୍ଚ 'ବୀରବିକ୍ରମ ଥିଏଟର' ପ୍ରତିଷ୍ଠିତ ହୋଇଥିଲା ।

ଖ୍ରୀ: ୧୮୯୭—୧୯୦୦ ଖଡ଼ିଆଳରେ ଉତ୍କଟ ମରୁଡ଼ି ଏବଂ ଭୟାବହ ଦୁର୍ଭିକ୍ଷ ପଡ଼ିଥିଲା । ଏହା ବ୍ରଜରାଜଙ୍କ ହୃଦୟରେ ଦାରୁଣ ଆଘାତ ଦେଇଥିଲା ଏବଂ ସେ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାର ସେବାରେ ନିଜକୁ ନିୟୋଜିତ କଲେ ଏବଂ ଡେପୁଟି କମିଶନର, ରାୟପୁରଙ୍କ ମାଧ୍ୟମରେ ସରକାରଙ୍କୁ ଜଣାଇଲେ । ସରକାରଙ୍କଠାରୁ କୌଣସି ସାହାଯ୍ୟ ମିଳିଲା ନାହିଁ । ସେତେବେଳେ ଗମନାଗମନର ସେତେ

ସୁବିଧା ନ ଥିଲା । ଦୁର୍ଭିକ୍ଷର କରାଳ ଛାୟା ସାରା ମଧ୍ୟପ୍ରଦେଶରେ ଖେଳିଗଲା । ବ୍ରଜରାଜ ମାଟି ମାଆର ସଚ୍ଚା ସନ୍ତାନ । ସେ ସରକାରୀ ସାହାଯ୍ୟକୁ ଅପେକ୍ଷା କଲେ ନାହିଁ । ସେତେବେଳେ ଭାଇସରୟ—ଗଭର୍ଣ୍ଣର ଜେନେରାଲଙ୍କ ଠାରୁ ପ୍ରଦେଶର ମୁଖ୍ୟ କମିଶନର, ଡେପୁଟି କମିଶନର ଏବଂ ତହସିଲଦାର ନିକଟକୁ ସରକାରଙ୍କ ଆଦେଶ ଆସୁଥିଲା । ସରକାରୀ ସାହାଯ୍ୟ ମିଳିବା କାଳକ୍ଷେପ ନୀତି ଥିଲା । ଲୋକେ ପୋକ ମାଛି ପରି ମରି ଥାଆନ୍ତେ । ମୃତ୍ୟୁ ମୁଖରୁ ଲୋକଙ୍କୁ ଉଦ୍ଧାର କରିବା ପାଇଁ ବ୍ରଜରାଜ ନିଜ ରାଜ୍ୟର ସବୁ ଶସ୍ୟଭଣ୍ଡାର ଖୋଲିଦେଲେ, କୃଷକମାନଙ୍କୁ ଋଣ ଯୋଗାଇଲେ, ଅନ୍ନଛତ୍ରମାନ ଖୋଲିଲେ । ବେକାର ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଗଲା । ଫଳତଃ, ରାଜ୍ୟରେ କେତେକ ପୋଖରୀ ଖୋଳଯାଇ କେତେକ ପୋଖରୀରୁ ପଙ୍କୋଦ୍ଧାର କରାଯାଇଥିଲା ।

ଖଡ଼ିଆଳର ଅନ୍ନପୂର୍ଣ୍ଣା ଭରା (ଧାନ ଗୋଦାମ) ମୁଖ୍ୟ ସାହାଯ୍ୟ କେନ୍ଦ୍ର ଥିଲା । ଖଡ଼ିଆଳ ରାଜ୍ୟ ଶସ୍ୟାଗାରରୁ ମାତ୍ର ୧,000 ଟଙ୍କାର ଧାନ ସୁଲଭ ମୂଲ୍ୟରେ କିଣି ଚାଷୀମାନଙ୍କୁ ବଣ୍ଟନ କରାଯାଇଥିଲା । ଏତିକି ହିଁ ସରକାରୀ ସାହାଯ୍ୟ । ଏହା ଡେପୁଟି କମିଶନର, ରାୟପୁର ବ୍ରଜରାଜଙ୍କୁ ଧନ୍ୟବାଦ ଜଣାଇ ହିନ୍ଦୀରେ ଲିଖିତ ପତ୍ର, ତା: ୨୮-୫-୧୮୯୭ରୁ ଜଣାଯାଏ ।

ଦୁର୍ଭିକ୍ଷ ଖ୍ରୀ: ୧୮୯୭ରୁ ଆରମ୍ଭ ହୋଇ ଖ୍ରୀ: ୧୯00 ପର୍ଯ୍ୟନ୍ତ ପଡ଼ିଥିଲା । ଏହି ଦୁର୍ଭିକ୍ଷକୁ ଛପନ ସାଲ ଦୁର୍ଭିକ୍ଷ ବୋଲି କୁହାଯାଏ କାରଣ ସମ୍ବତ ୧୯୫୬ ର ଘଟଣା । ବ୍ରଜରାଜଙ୍କ ବଦାନ୍ୟତା ଯୋଗୁଁ ହଜାର ହଜାର ଜନଜୀବନ ରକ୍ଷା ପାଇଥିଲା । ଦୁର୍ଭିକ୍ଷର ପ୍ରଳୟଙ୍କରୀ ଲୀଳା : ଅନାହାର, ରୋଗ ଏବଂ ମୃତ୍ୟୁର ପରିସମାପ୍ତି ପରେ ଅକ୍ଟୋବର, ୧୯00 ରେ ସରକାରୀ ସାହାଯ୍ୟ ମିଳିଲା ।

୧୮୯୭ ମସିହାରେ ମହାରାଣୀ ଭିକ୍ଟୋରିଆଙ୍କ ଶାସନର ହୀରକ ଜୟନ୍ତୀ ସ୍ମୃତି ଉଦ୍ଦେଶ୍ୟରେ ଖଡ଼ିଆଳ ନିକଟବର୍ତ୍ତୀ ଏକ ବିରାଟ ଉଦ୍ୟାନ ହେଉଛି 'ବ୍ରଜ-ରାଜ ବାଗ' । ବ୍ରଜରାଜ ନିର୍ମାଣ କରାଇଥିବା ଏହାର 'ପ୍ରବେଶ ଦ୍ୱାର' ଆଜି ବି ସେହିପରି ଅଛି । ଏହି ଉଦ୍ୟାନରେ ନାନା ସୁଗନ୍ଧ ଫୁଲ, ସୁସ୍ୱାଦୁ ଫଳ ବୃକ୍ଷ ତଥା ପକ୍‌କା ଘର ଥିଲା । ଜଣେ ବାଗବାନ 'ମହାରାଜ ବାଗ', ନାଗପୁରରେ ତାଲିମ ପାଇଥିଲେ । ବ୍ରଜରାଜ ପ୍ରତ୍ୟହ ଏହି ଉଦ୍ୟାନକୁ ସାନ୍ଧ୍ୟ ଭ୍ରମଣ କରିବାକୁ ଯାଉ-ଥିଲେ । ଏହା ତାଙ୍କ ପ୍ରକୃତି ପ୍ରୀତିର ପରିଚାୟକ ।

ଭାରତର ସମ୍ରାଜ୍ଞୀ ରାଣୀ ଭିକ୍‌ଟୋରିଆଙ୍କ ୧୮୯୭ ମସିହା ଜୁନ, ୨୦

ତାରିଖରେ ବ ୬୦ ର୍ଷ ଶାସନ ପୂର୍ତ୍ତି ଉପଲକ୍ଷେ୍ୟ ମହାମାନନୀୟା ସମ୍ରାଜ୍ଞୀଙ୍କ ମାନପତ୍ର ମୁଖ୍ୟ କମିଶନର, ରାୟପୁର ସି. ଆଇ. ଲିୟାଲ ୧୮୯୮ ମସିହା ଜାନୁଆରୀ ୬ ତାରିଖରେ ଲାଲ ବ୍ରଜରାଜଙ୍କୁ ପ୍ରଦାନ କରିଥିଲେ । ଏହି ପ୍ରଶଂସା ପତ୍ରରେ ବ୍ରଜରାଜଙ୍କ ଛପନ ସାଲ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତା ସେବା ଉଲ୍ଲିଖିତ ହୋଇଛି । 'ଦୁର୍ଭିକ୍ଷ ସାହାଯ୍ୟ କେନ୍ଦ୍ର' ସ୍ଥାପନ କରିବା, ବ୍ରହ୍ମଦେଶ ଓ ଅନ୍ୟାନ୍ୟ ସ୍ଥାନରୁ ଚାଉଳ ସଂଗ୍ରହ କରି ଲୋକଙ୍କୁ ଯୋଗାଇବା ଓ ସାହାଯ୍ୟ ମୂଳକ କାର୍ଯ୍ୟକଳାପ ପାଇଁ ବ୍ରଜରାଜ ସରକାରଙ୍କ ପ୍ରଶଂସା ଓ ପ୍ରଜାବର୍ଗଙ୍କ ଭକ୍ତିଭାଜନ ହୋଇଥିଲେ ।

ଖ୍ରୀ: ୧୯୦୩ ରେ ସପ୍ତମ ଏଡଓ୍ଵାର୍ଡ ଇଂଲଣ୍ଡର ସିଂହାସନ ଆରୋହଣ କଲେ । ଦିଲ୍ଲୀରେ ଏକ ଦରବାର ଅନୁଷ୍ଠିତ ହୋଇଥିଲା । ବ୍ରଜରାଜ ନିମନ୍ତ୍ରିତ ହୋଇ ଐତିହାସିକ ଦିଲ୍ଲୀ ଦରବାରରେ ଯୋଗ ଦେଲେ ଏବଂ ସେ ଦୁଃଖଦୁର୍ଦ୍ଦଶାଗ୍ରସ୍ତ ମାନବ ସେବା ନିମିତ୍ତ ସମ୍ମାନ ସୂଚକ ବିଶିଷ୍ଟ ପୁରସ୍କାର " କୈଶର-ଇ-ହୀନ୍ଦ " (ସ୍ୱର୍ଣ୍ଣପଦକ) ଏବଂ 'ଦିଲ୍ଲୀ ଦରବାର ମେଡଲ' ସମ୍ମାନିତ ହୋଇଥିଲେ । ବ୍ରଜରାଜ ଦିଲ୍ଲୀର ଲାଲକିଲ୍ଲା ପରିଦର୍ଶନ କରି 'ଦିବାନ-ଇ-ଆମ' ଓ 'ଦିବାନ-ଇ-ଖାସ' ର ଶିଳ୍ପକୌଶଳରେ ମୁଗ୍ଧ ହୋଇ ଖଡ଼ିଆଳରେ 'ଦରବାର ହଲ'ର ଶୁଭାରମ୍ଭ କରିଥିଲେ । ଏହାକୁ ତାଙ୍କ ସୁଯୋଗ୍ୟ ଉତ୍ତରାଧିକାରୀ ଖ୍ରୀ: ୧୯୧୦ ରେ ସମ୍ପୂର୍ଣ୍ଣ କଲେ । ସପ୍ତମ ଏଡଓ୍ଵାର୍ଡଙ୍କ ଅଭିଷେକ ଉତ୍ସବ ସ୍ମୃତିରକ୍ଷା ପାଇଁ ଖଡ଼ିଆଳର ଦୈନିକ ବଜାରରେ ବ୍ରଜରାଜ ଖ୍ରୀ: ୧୯୦୩ରେ ନିର୍ମାଣ କରାଇଥିବା 'ସ୍ମୃତି ସ୍ତମ୍ଭ' ଅଧ୍ୟାବଧି ଦଣ୍ଡାୟମାନ ।

୧୮୯୪ ମସିହା ଜାନୁଆରୀ ମାସରେ ବ୍ରଜରାଜ ମୁଖ୍ୟ କମିଶନରଙ୍କୁ ସମ୍ମାନ ଦେବାକୁ ରାୟପୁର ଯାଇଥିଲେ । ଡେପୁଟି କମିଶନର ତାଙ୍କୁ ଅବକାରୀ ଏବଂ ପନଧୁରୀ ରାଜସ୍ୱ କ୍ଷତିପୂରଣ ସର୍ତ୍ତରେ ସମର୍ପଣ କରିବାକୁ କହିଥିଲେ । ୧୯୦୪ ମସିହା ଜୁଲାଇ ୧୫ ତାରିଖରେ ରାୟପୁରର ଡେପୁଟି କମିଶନର ଖଡ଼ିଆଳ ରାଜ୍ୟରେ ଥିବା ସମସ୍ତ କାଞ୍ଜିଆହୁଦା ଅଧିକାର କଲେ । ତେଣୁ ବ୍ରଜରାଜ ମୁଖ୍ୟ କମିଶନରଙ୍କ ନ୍ୟାୟାଳୟ ଏବଂ ପ୍ରିଭି କାଉନସିଲରେ ମୋକଦ୍ଦମା ଦାଏର କଲେ । ତାଙ୍କ ଓକିଲ ହରିସିଂହ ଗଉଡ ଫିସ ନ ନେଇ ମୋକଦ୍ଦମା ଲଢ଼ିଲେ । ଏହି ମୋକଦ୍ଦମାର କାଗଜପତ୍ର ଲେଖକ ପ୍ରଦାନ କରିବାରୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଯାଦୁଘରରେ ସଂରକ୍ଷିତ ହୋଇଛି । ଗବେଷକ ଅଧ୍ୟୟନ କରି ପାରନ୍ତି ।

ଛତିଶଗଡ଼ ବିଭାଗ କମିଶନର ଏଫ. ଏ. ଚି. ଫିଲିପ୍ସ, ଆଇ. ସି. ଏସ୍.

୧୯୦୪ ମସିହା ଜୁନ ପହିଲା ଏବଂ ୧୫ ତାରିଖରେ ରଜା ବ୍ରଜରଜ ସିଂହ ଦେଓ ନିକଟକୁ ପ୍ରେରିତ ପତ୍ରରୁ ବିଦିତ ହୁଏ, ବ୍ରଜରଜ ରଜା ଉପାଧିରେ ଭୂଷିତ ହୋଇ ଥିଲେ । 'ରଜା' ପଦବୀ ସନନ୍ଦ ଦୁର୍ମିଳ ।

ଖ୍ରୀ: ୧୯୦୬ରେ ଦ୍ୱିତୀୟ ପତ୍ନୀ ଶ୍ରୀମତୀ ମୁକ୍ତା କୁମାରୀ ଦେବୀଙ୍କ ସ୍ମୃତିରେ "ମୁକ୍ତାପୁର" ଗ୍ରାମ, ବ୍ରଜରଜ ବାଗ ନିକଟବର୍ତ୍ତୀ "ମୁକ୍ତା ସାଗର" ଏବଂ "ମୁକ୍ତା କୁମାରୀ ବାଉଲୀ" ବ୍ରଜରଜ ପ୍ରତିଷ୍ଠା କରିଥିଲେ । 'ମୁକ୍ତା କୁମାରୀ ବାଉଲୀ'— ନାମ ଫଳକ, ଶାଖା ଯାଦୁଘର ଖଡ଼ିଆଳରେ ସଂରକ୍ଷିତ ହୋଇଛି ।

ମାନବ ଜୀବନର ମୂଲ୍ୟବୋଧ, ବାଲ୍ୟ କାଳରେ ଦୁଃଖଦୁର୍ଦ୍ଦଶା ତଥା କୃଚ୍ଛ ସାଧନା ହେତୁ ବ୍ରଜରଜ ଯଶ ଗୌରବର ଉଚ୍ଚ ଆସନରେ ଅଧିଷ୍ଠିତ । ରଜା ବ୍ରଜରଜ ସିଂହଙ୍କ ଓଡ଼ିଆ ସାହିତ୍ୟକୁ ଶେଷ ଅବଦାନ ହେଉଛି— ସଂସ୍କୃତ ଭଷାରେ ରଚିତ 'ସତ୍ୟନାରାୟଣ ବ୍ରତ କଥା'ର ଓଡ଼ିଆ ଅନୁବାଦ ।

ଦିଲ୍ଲୀ ଦରବାରରୁ ଫେରିଲା ପରେ ରଜା ବ୍ରଜରଜ ସିଂହ ଦେଓ ଶୋଥ ଜଳୋଦର ରୋଗ କ୍ରମଶଃ ବଢ଼ୁଥିବା ଅନୁଭବ କଲେ । ସେ ନିୟମିତ ଚିକିତ୍ସିତ ହେଉଥିଲେ ସୁଦ୍ଧା ରୋଗର ଉପଶମ ହେଲା ନାହିଁ । ସେ ନିଜ ଜାତକ ଗଣନା କରି ଆସନ୍ନ ମୃତ୍ୟୁ ଘଟିବା ଜାଣିଥିଲେ । ତେଣୁ ସେ କାଶୀ ଯିବେ ଆଉ ଫେରିବେ ନାହିଁ ବୋଲି ଇଚ୍ଛା ପ୍ରକାଶ କଲେ । ବଳଦ ଗାଡ଼ିର ଯୁଗ । ରଜାଙ୍କ ଟାଙ୍ଗାରେ ହଳେ ସୁନ୍ଦର ଧଳା ବଳଦ ଯୋଚା ହେଲା । ସମ୍ବଲପୁର ଯାଇ କାଶୀକୁ ରେଲଗାଡ଼ିରେ ଯିବେ ବୋଲି ଟାଙ୍ଗାରେ ବସି ଅନୁଚରବର୍ଗ ଏବଂ ଦ୍ୱିତୀୟ ପୁତ୍ର ରାଧାନାଥ ଗ୍ରନ୍ଥାବଳୀର ପ୍ରକାଶକ କବି ଶିବନାରାୟଣ ଦେବଙ୍କ ସହ ଯାତ୍ରା ଆରମ୍ଭ କଲେ ମାତ୍ର ବିଧିର ବିଧାନ ଅନ୍ୟ ପ୍ରକାର, ଯାତ୍ରା ପଥରେ ମହାସମୁଦ ଠାରେ ମହାନ ଆତ୍ମାର ମହାପ୍ରୟାଣ ହେଲା । ସେ ଦିନ- ନଭେମ୍ବର ପହିଲା, ୧୯୦୭ । ହିନ୍ଦୁ ପଞ୍ଜିକା ଅନୁଯାୟୀ ରଜା ବ୍ରଜରଜ ସିଂହ ଦେଓ, କୈସର-ଇ-ହିନ୍ଦ (ସ୍ୱର୍ଣ୍ଣ ପଦକ) ବ ୪୬ ବର୍ଷ ବୟସ କାର୍ତ୍ତିକ କୃଷ୍ଣପକ୍ଷ ଏକାଦଶୀ ତିଥିରେ ସ୍ୱର୍ଗାରୋହଣ କଲେ ।

କବି ଶ୍ରୀ ଚିନ୍ତାମଣି ମହାନ୍ତି ବ୍ରଜରଜଙ୍କ ଗୌରବ ଗାନ କରି " ଉତ୍କଳ ବିକ୍ରମାଦିତ୍ୟ " ଆଖ୍ୟା ଦେଇ ଅଛନ୍ତି ।

ଖ୍ରୀ: ୧୯୦୭ ରେ ବୀରବିକ୍ରମ ଦେବ ଖଡ଼ିଆଳର ରଜ ସିଂହାସନ ଆରୋ-

ହଣ କଲେ । ପିତାଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସେ ମହାସମୁଦ ଠାରେ 'ବ୍ରଜରାଜ ନିମ୍ନ ପ୍ରାଥମିକ ବିଦ୍ୟାଳୟ' ସ୍ଥାପନ କଲେ । ଅଧୁନା ଏହି ବିଦ୍ୟାଳୟ 'ବ୍ରଜରାଜ ଉଚ୍ଚ ବିଦ୍ୟାଳୟ' ହୋଇଛି । ବ୍ରଜରାଜଙ୍କ ସମାଧି ମଧ୍ୟ ସେଠାରେ ନିର୍ମିତ ହୋଇଥିଲା । ମହାସମୁଦରେ 'ରାଜା ବଜାର', ସାପ୍ତାହିକ ବଜାର ପ୍ରତି ଗୁରୁବାର ଦିନ ବସି ରାଜା ବ୍ରଜରାଜ ସିଂହ ଦେଓଙ୍କ ସ୍ମୃତିକୁ ଉଜ୍ଜୀବିତ କରୁଅଛି ।

୧୯୭୭ ମସିହାରେ ତତ୍କାଳୀନ ରାଣୀ ସାହେବା ୰ ଶ୍ରୀମତୀ ସୌଭାଗ୍ୟ ମଞ୍ଜରୀ ଦେବୀ "ଖଡ଼ିଆଳ ମହାବିଦ୍ୟାଳୟ"କୁ "ବ୍ରଜରାଜ ବାଗ" ଦାନ କରିଥିଲେ । ଫଳପୁଷ୍ପ ଶୋଭିତ ଏହି ଆକର୍ଷଣୀୟ ସ୍ଥଳୀ, ଦିନେ ରାଜ ପରିବାରର ପ୍ରମୋଦ ଉଦ୍ୟାନ ଥିଲା, ଆଜି ମହାବିଦ୍ୟାଳୟ ପରିସର ହୋଇଛି । ୰ ରାଜା ବ୍ରଜରାଜ ସିଂହ ଦେଓଙ୍କ ଅମର ଆତ୍ମା ଏଥିପାଇଁ ଶାନ୍ତି ଲାଭ କରିଥିବ ।

—ଜିତାମିତ୍ର ପ୍ରସାଦ ସିଂହ ଦେଓ

ଓଡ଼ିଆ ଅନୁବାଦ—ଶ୍ରୀ ମୋହିତ ମୋହନ ମହାପାତ୍ର,
ଉପସଭାପତି,
ଖଡ଼ିଆଳ ସାହିତ୍ୟ ସମିତି, ଖଡ଼ିଆଳ
ଜି: କଳାହାଣ୍ଡି, ପିନ୍- ୭୬୬୧୦୭



ବ୍ରଜରାଜ ସିଂହ ଦେଓ
୧୮୮୩ ମସିହାରେ
ଖଡ଼ିଆଳ ସାହିତ୍ୟ ସମିତି
ପ୍ରତିଷ୍ଠା କରିଥିଲେ ।



• ୟୁନାଇଟେଡ୍ ଛାପାଖାନା, ଖଡ଼ିଆଳ •